

ଟ ୪.୫୦

ନ୍ୟାସନାଲ ବୁକ ଟ୍ରଷ୍ଟ, ଇଣ୍ଡିଆ






# ଲାଞ୍ଜ

ହାଇଡ୍ରୋସେ ଆଲୁଓ୍ୱା

ଅଳଙ୍କରଣ

ଅତନୁ ରାୟ

ISBN-81-237-0317-1

1993 (ଶକାବ୍ଦ 1914)

Tails *(Oriya)*
ଟ 8.50
ନିର୍ଦ୍ଦେଶକ, ନ୍ୟାସନାଲ ବୁକ ଟ୍ରଷ୍ଟ, ଇଣ୍ଡିଆ, ଏ - 5, ଗ୍ରୀନ୍ ପାର୍କ,
ନୂଆଦିଲ୍ଲୀ - 110 016 କର୍ତ୍ତୃକ ପ୍ରକାଶିତ ।

ନେହେରୁ ବାଳ ପୁସ୍ତକାଳୟ

# ଲାଞ୍ଜ

ହାଇଡ୍ରୋସେ ଆଲୁଓ୍ୱା

ଅଳଙ୍କରଣ
ଅତନୁ ରାୟ

ଅନୁବାଦ
ଶୈଳବାଳା ମହାପାତ୍ର



ନ୍ୟାସନାଲ ବୁକ ଟ୍ରଷ୍ଟ, ଇଣ୍ଡିଆ

ପୃଥିବୀରେ ବହୁ ପ୍ରକାର ପଶୁ ଅଛନ୍ତି ।
ଗାଈ, କୁକୁର, ମାଙ୍କଡ଼, ଗୁଣ୍ଡୁଚି ମୂଷା ଏବଂ କଙ୍ଗାରୁ ଭଳି
ପଶୁମାନଙ୍କର ଲାଞ୍ଜ ଥାଏ । ସେଇଭଳି ବଡ଼ ତିମିମାଛ ଠାରୁ
ସବୁଠାରୁ ଛୋଟ ମାଛ ପର୍ଯ୍ୟନ୍ତି ସମସ୍ତଙ୍କର ଲାଞ୍ଜ ଅଛି ।







ମୟୁର, ଶୁଆ ଓ ଓଟପକ୍ଷୀର
ମଧ୍ୟ ଲାଞ୍ଜ ଅଛି । ସେଇଭଳି
ଝିଟିପିଟି ଓ କଙ୍କଡ଼ାବିଛାର ଲାଞ୍ଜ ଥାଏ ।



ଭିନ୍ନ ଭିନ୍ନ ଆକାର ଓ ପ୍ରକାରର ଲାଞ୍ଜ ତୁମେ ଦେଖିବାକୁ ପାଇବ । ସେମାନେ ଅଲଗା ଅଲଗା କାମରେ ଲାଗିଥା'ନ୍ତି ।

ଗାଈର ଲମ୍ବା ଲାଞ୍ଜଟିଏ ଅଛି । ଏହାର ଶେଷ ଆଡ଼କୁ ବାଳ ଗୋଛାଏ ଥାଏ । ସେଇ ଚଅଁରରେ ସେ ମଶା, ମାଛି, ପୋକ, ଜୋକମାନଙ୍କୁ ବାଡ଼େଇ ଉଡ଼ାଇଦିଏ ।



କୁକୁରମାନେ ଅଲଗା ଅଲଗା ଜାତିର ହୋଇଥିବାରୁ
ସେମାନଙ୍କ ଲାଞ୍ଜିର ଆକାର ଓ ଆକୃତି ମଧ୍ୟ ଅଲଗା
ହୋଇଥାଏ । ସେ ଖୁସିଥିବା ବେଳେ ଲାଞ୍ଜିକୁ ହଲାଉଥାଏ ।
ଡରିଗଲେ ଲାଞ୍ଜିକୁ ଗୋଡ଼ ମଝିରେ ପୁରାଇଦିଏ ।



ମାଙ୍କଡ଼ର ଲାଞ୍ଜ ବହୁତ ଲମ୍ବା ଓ ସରୁ ଅଟେ ।
ଡାଳରୁ ଡାଳକୁ ଡେଇଁଲାବେଳେ ଓ ଦୋଳି
ଖେଳିଲାବେଳେ ଏଇ ଲାଞ୍ଜ ତାକୁ ସାହାଯ୍ୟ କରେ ।



ଗୁଣ୍ଡୁଚିର ଲାଞ୍ଜ ବଡ଼ ଓ ସେଥିରେ ଲମ୍ବା ଲମ୍ବା ରୁମ ଭର୍ତ୍ତି ହୋଇଥାଏ । ଏଇ ଲାଞ୍ଜିଟି ଯୋଗୁଁ ସେ ଗଛ ଡାଳରେ ଏ ପଟରୁ ସେପଟ ଭଲଭାବେ ଦୌଡ଼ିପାରେ । ଗୋଟିଏ ଡାଳରୁ ଆଉ ଗୋଟିଏ ଡାଳକୁ ଡେଇଁପାରେ । ଦେଖ, ଉଷୁମ ପାଇବ ବୋଲି ସେ କିପରି ନିଜ ଚାରିପଟେ ଲାଞ୍ଜିଟିକୁ ଗୁଡ଼ାଇ ଶୋଇଛି ।



କଙ୍ଗାରୁର ଲାଞ୍ଜିଟି ମୋଟା ଓ ବଳୁଆ । ବହୁତ ଦୂରକୁ କୁଦା ମାରିବା ବେଳେ ଏହା ତାକୁ ସାହାଯ୍ୟ କରେ । ଦେହକୁ ଆରାମ୍ ଦେବା ପାଇଁ ସେ ଲାଞ୍ଜି ଉପରେ ଭରାଦେଇ ତଳେ ବସିଥାଏ ।

ମାଛର ଲାଞ୍ଜିତ ତା' ପାଇଁ ଭାରି ଦରକାରୀ ।
ନିଜ ଇଚ୍ଛାରେ ପାଣିରେ ଖେଳିବା ପାଇଁ ଓ ଦିଗ ବଦଳେଇବା
ପାଇଁ ଏହା ତାକୁ ସାହାଯ୍ୟ କରେ ।

ଆକାଶରେ ଉଡ଼ିଲାବେଳେ ପକ୍ଷୀମାନେ ଲାଞ୍ଜ ଦ୍ୱାରା ଦିଗ ବଦଳାନ୍ତି । ନିଜକୁ ସୁନ୍ଦର ଦେଖେଇବା ପାଇଁ ମଧ୍ୟ ସେମାନେ ଲାଞ୍ଜିକୁ କାଢ଼ି ରଖିଥା'ନ୍ତି ।

ମୟୁରୀକୁ ଦେଖେଇବା ପାଇଁ ମୟୁର ତା'ର ଲମ୍ବା ଓ ଅତି ସୁନ୍ଦର ଲାଞ୍ଜଟିକୁ ପଙ୍ଖା ପରି ମେଲାଇଦିଏ ।

ତୁମେ ଝିଟିପିଟିର ଲାଞ୍ଜ ଦେଖିଚ ? ଆଉ ଗୋଟେ ଝିଟିପିଟି ସାଙ୍ଗେ ଲଢ଼େଇ କଲାବେଳେ ବା କେହି ଆଘାତ କରିବାକୁ ଆସିଲେ ସେ ତା'ର ଲାଞ୍ଜିଟି ଖସାଇ ଦେଇ ଦୌଡ଼ି ଚାଲିଯାଏ । ପଛରେ ପୁଣିଥରେ ତା'ର ଆଉ ଗୋଟେ ଲାଞ୍ଜ ଉଠେ ।

ତୁମେ କଙ୍କଡ଼ା ବିଛାର ନାହୁଡ଼ ବିଷୟରେ ଶୁଣିଥିବ । ବିଛାର ଏଇ ନାହୁଡ଼ ତା'ର ଲମ୍ବା ଲାଞ୍ଜିଟିରେ ଥାଏ । ଏହା ଶେଷ ଆଡ଼କୁ ବଙ୍କା ହୋଇଥାଏ । ଏଇ ନାହୁଡ଼ରେ ସେ କୁନି କୁନି ପ୍ରାଣୀମାନଙ୍କୁ ଧରି ଖାଏ ।

ହନୁମାନର ଲାଙ୍ଗୁଡ଼ କଥା ମନେ ଅଛି ?
ରାବଣକୁ ଉଚିତ ଶିକ୍ଷା ଦେବା ପାଇଁ ସେ ନିଜ ଲାଞ୍ଜରେ ନିଆଁ
ଲଗାଇ ପୁରା ଲଙ୍କା ନଗରୀ ପୋଡ଼ି ଦେଇଥିଲା ।

ତୁମେ ଜାଣ କି ପିଲେ - ଦିନେ ମଣିଷର ମଧ୍ୟ ଲାଞ୍ଜ ଥିଲା ! ମଣିଷ ଏହାକୁ କିଛି କାମରେ ଲଗାଉ ନଥିଲା । ଏହା ଛିଣ୍ଡି ଛିଣ୍ଡି ଶେଷକୁ କିଛି ରହିଲା ନାହିଁ ।





AJANTA OFFSET PRINTERS, DELHI